ପ୍ରକାଶକ : କମଳ ପ୍ରକାଶନ, ବାଲୁବଜାର, କଟକ -୨

ମୁଦ୍ରକ : ସୁରୁଚି ପ୍ରିଣ୍ଟର୍ସ, ଖଟବିନ୍ ସାହି, କଟକ-୧

ପ୍ରଥମ ସଂସ୍କରଣ : ୧୯୯୬, ମୂଲ୍ୟ : ଟ. ୮/-

## ସୂଚୀପତ୍ର



—

# ସ୍ୱାର୍ଥପର କୁକୁର

ଜଣେ ଚାଷୀ ତା'ର ବଳଦ ଖାଇବା ପାଇଁ ଦାନା କୁଣ୍ଡରେ କିଛି ନଡ଼ା କାଟି ରଖିଥିଲା। ଏହି ସମୟରେ ଗୋଟିଏ କୁକୁର ଆହାର ଖୋଜି ଆସି ସେହି କୁଣ୍ଡରେ ପଶିଲା। କିନ୍ତୁ ସେଥିରେ କୁକୁର ଖାଇଲାଭଳି କିଛି ଜିନିଷ ନଥିଲା। ତେଣୁ ସେ ନଡ଼ା ଉପରେ ଶୋଇରହିଲା।



କିଛି ସମୟ ପରେ ବଳଦ ନଡ଼ା ଖାଇବାକୁ ଆସିଲା। ତହୁଁ କୁକୁର ଭୁକି ଓ ଦାନ୍ତ ଦେଖାଇ ତାକୁ କାମୁଡ଼ିବାକୁ ବାହାରିଲା। ନଡ଼ାକୁ ମୁହଁ ବଢ଼ାଇବା ପାଇଁ ବଳଦର ସାହସ ହେଲାନାହିଁ।

କୁକୁର ତାକୁ ଏପରି ତଡ଼ିବାର କାରଣ ବଳଦ ବୁଝି ପାରିଲା ନାହିଁ। ସେ ନଡ଼ା ଖାଇବାକୁ ମୁହଁ ବଢ଼ାଇଲେ କୁକୁର ତାକୁ କାମୁଡ଼ିବାକୁ ବାହାରେ। ଏହା ଦେଖି ବଳଦ କହିଲା, "ତୁ କେଡ଼େ ଖରାପ ଜୀବ! ତୁ କଅଣ ନଡ଼ା ଖାଇବୁ ଯେ ଜଗି ବସିଚୁ? ତୁ କୁଣ୍ଡରୁ ବାହାରି ଯା– ମୁଁ ନଡ଼ା ଖାଇବି। ଖାଉନ୍ଦ ମୋ ଖାଇବା ପାଇଁ ସେ ନଡ଼ା ରଖିଛି, ତୋ ଶୋଇବା ପାଇଁ ନୁହେଁ।"

କୁକୁର କହିଲା, "ମୁଁ ନଡ଼ା ଖାଇବି ନାହିଁ ସତ, କିନ୍ତୁ ମୁଁ ଖାଇ ପାରିବି ନାହିଁ ବୋଲି ତୁ କାହିଁକି ଖାଇବୁ? ମୁଁ ତ ଉପାସ ଅଛି, ତୁ ମଧ୍ୟ ଉପାସ ରହ।"

ସ୍ୱାର୍ଥପରମାନେ ଏହିପରି ପରର ଅପକାର କରିଥାନ୍ତି।

## ଗଧର ବୋକାମି

ଜଣେ ଲୋକର ଗୋଟିଏ ଗଧ ଓ ଗୋଟିଏ କୁକୁର ଥିଲା। ସେ ଗଧ ପାଇଁ ଘାସ ଓ କୁକୁର ପାଇଁ ମାଂସ ଖଞ୍ଜା କରି ଦେଇଥିଲା। ତେଣୁ ଜନ୍ତୁଦୁଇଟି ମାଲିକକୁ ଭଲପାଉଥିଲେ। ଗଧ ମାଲିକର ବୋଝ ବୋହୁଥିଲା ଓ କୁକୁର ରାତିରେ ଘର ଜଗୁଥିଲା। ଅଜଣା ଲୋକ ଦେଖିଲେ କୁକୁର ଭୁକି ମାଲିକକୁ ସାବଧାନ କରିଦେଉଥିଲା।

ଲୋକଟିର ଏ ଦୁଇଟି ଜୀବଙ୍କ ପ୍ରତି ଭାରି ଆଦର। ଗଧ ଘାସ ଖାଉଥିବାବେଳେ ସେ ତା'ର ଦେହ ଆଉଁଷି ଦିଏ। ସେହିପରି ସେ କେବେ କେବେ କୁକୁରକୁ ଆଦର କରି ତାକୁ କୋଳରେ ବସାଏ; ତା'ର ଦେହ ଆଉଁଷି ଦିଏ।

ଦିନେ ଗଧ ମନରେ ବିଚାରକଲା, "ଖାଉନ୍ଦ ଏ କୁକୁରକୁ

ଯେତେ ଆଦର କରୁଚନ୍ତି, ମୋତେ ସେତେ ଆଦର କରୁନାହାନ୍ତି। କୁକୁରଟା ଦିନଯାକ ଅଗଣାରେ ଖେଳି ବୁଲୁଛି। ଖାଉନ୍ଦଙ୍କ କୋଳକୁ ଡେଇଁ ପଡ଼ିଲେ ସେ ତାକୁ ଧରି ଗେଲ କରୁଚନ୍ତି। କୁକୁର ତାଙ୍କ ମୁହଁରେ ମୁହଁଲଗାଉଚି। ମୁଁ ତାରି ପରି ଖେଳିବୁଲି ତାଙ୍କ କୋଳକୁ ଡେଇଁପଡ଼ିଲେ ସେ ମୋତେ ମଧ କୋଳରେ ବସାଇ ମୋ ଦେହ ଆଉଁଷିବେ।''



ଏହିପରି ବିଚାରି ସେ ଦିନେ ଅଗଣାଯାକ ବୁଲିବାକୁ ଲାଗିଲା। ଖାଉନ୍ଦ ଚଉକି ଉପରେ ବସିଥିବା ଦେଖି ସେ ଡେଇଁ ଡେଇଁକରି ତାଙ୍କ ପାଖକୁ ଗଲା। ତାର ଆଗ ଗୋଡ଼ ଦୁଇଟା ତାଙ୍କ ଦେହରେ ଭରାଦେଇ ମାଲିକର ମୁହଁରେ ମୁହଁ ଲଗାଇଲା।

ଗଧର ଏପରି ଢଙ୍ଗ ଦେଖି ଖାଉନ୍ଦ ବିରକ୍ତ ହୋଇ ଉଠିଲେ। ଗୋଟାଏ ବାଡ଼ିଧରି କେତେ ପାହାର ପିଟି ତାକୁ ଖୁଣ୍ଟରେ ବାନ୍ଧିଦେଲେ।

ଗଧ ମାଡ଼ଖାଇ କାନ୍ଦି କାନ୍ଦି ଭାବିଲା– "ମୁଁ କୁକୁର ପରି ଖେଳି କୁଦି ଖାଉନ୍ଦଙ୍କ କୋଳରେ ବସିବାକୁ ଗଲି। ତାଙ୍କ ମୁହଁ ଚାଟିଲି। କିନ୍ତୁ ତାର ଓଲଟା ଫଳ ପାଇଲି। ଖାଉନ୍ଦ ମତେ ମାଡ଼ଦେଇ ତଡ଼ିଦେଲେ। ଆଗେ ଟିକିଏହେଲେ ଆଉଁଷି ଦେଉଥିଲେ, ଏବେ ତା' ମଧ ଗଲା। ଏଣିକି ମୁଁ ଆଗଭଳି ଚଳିବି। କୁକୁର ଭଳି ହେବାକୁ ଚେଷ୍ଟା କରିବି ନାହିଁ।"

'ନିଜ କରମେ ଦିଅ ମନ, ପର କରମ ଦୁଃଖ ଜାଣ।'

# ପରର କ୍ଷତି କରନାହିଁ

ଦିନେ ଖୁବ୍ ଶୀତ ପଡ଼ିଥାଏ। ଗୋଟିଏ ସାପ ଶୀତରେ ଅଥୟ ହୋଇ ଆଶ୍ରୟ ଖୋଜି ବୁଲିଲା। କିଛି ଦୂରରେ ଗୋଟିଏ କମାରଶାଳ ଥିଲା। କମାରଶାଳରେ ନିଆଁ ଥିବାରୁ ଘରଟି ବେଶ୍ ଉଷ୍ଣମ ହୋଇଥିଲା। ସାପ ସେହି ଘରେ ପଶିଗଲା। ତା'ର ଶୀତ ଛାଡ଼ିଗଲା।

ସାପ ଏଥର ଘରଯାକ ବୁଲି କିଛି ଖାଇବାପାଇଁ ଖୋଜିଲା। ଘର ଭିତରେ କମାରର ହାତହତିଆର ପଡ଼ିଥିଲା। ତା' ଭିତରେ ଗୋଟିଏ ଉହା ଥିଲା। ସେଇଟାକୁ ଦେଖି ସେ ଏକ ଖାଇବା ଜିନିଷ ମନେକରି କାମୁଡ଼ିଲା। ଲୁହାଟାକୁ କାମୁଡ଼ିବାରୁ ତା' ପାଟିରୁ ରକ୍ତ ବାହାରିଲା। କିନ୍ତୁ ସାପ ମନେକଲା ଯେ ସେ କାମୁଡୁଥିବାରୁ ଜିନିଷଟାରୁ ରକ୍ତ ବାହାରୁଛି। ତେଣୁ ସେ ଆହୁରି ଜୋର୍‌ରେ କାମୁଡ଼ି ଲାଗିଲା।

ସାପ ଯେତିକି ବେଶି କାମୁଡ଼ିଲା, ସେତିକି ବେଶି ରକ୍ତ ବାହାରିଲା। ଏହିପରି କେତେବେଳଯାଏ କାମୁଡ଼ି କାମୁଡ଼ି ସାପ ଶେଷରେ ହାଲିଆ ହୋଇପଡ଼ିଲା। ସେ ଏଥର ଉହାଟାକୁ ପାଟିରୁ

ବାହାର କରି ପକାଇଦେଲା । ସାପର ପାଟି ପୋଡ଼ିଉଠିଲା । ସେ ଏତେବେଳକୁ ବୁଝିଲା ଯେ ସେ ଯାହାକୁ କାମୁଡୁଥିଲା ତା'ର କିଛି କ୍ଷତି ହୋଇନାହିଁ, କ୍ଷତି ହୋଇଛି ତା' ନିଜର । ତା' ପାଟି ଚିରିହୋଇ ସେଥିରୁ ରକ୍ତ ବାହାରୁଛି । କେତେ ଦିନରେ ଘାଆ ଶୁଖିବ କେଜାଣି ! ସାପ ଉହାର କ୍ଷତି କରିବା ଭଳି ଯେ ଅନ୍ୟର କ୍ଷତି କରିବାକୁ ଯାଏ – ତା' ନିଜର ହିଁ କ୍ଷତି ହୁଏ ।

## ଗୁଣ ଚିହ୍ନେ ଗୁଣୀ

ଥରେ ଗୋଟିଏ କୁକୁଡ଼ା ଆହାର ଖୋଜୁଥିଲା । ପଡ଼ିଆଯାକ ଥଣ୍ଡରେ ଖୁମ୍ପି ଖୁମ୍ପି କେଉଁଠାରେ ପୋକଟିଏ ଦେଖିଲେ ସେ ସେଇଟିକୁ ଗିଳି ଦେଉଥାଏ । ଅନେକ ବେଳଯାଏ ଏହିପରି ବୁଲି ବୁଲି ସେ ଯେଉଁ ପୋକଜୋକ ଖୁଣ୍ଟି ଖାଇଲା ସେଥିରେ ତା'ର ପେଟ ପୂରିଲା ନାହିଁ । ଏଣେ ବେଳ ବୁଡ଼ିଆସୁଛି । ଅନ୍ଧାର ହୋଇଗଲେ ସେ ଆଉ ପୋକ ଖୋଜି ପାରିବ ନାହିଁ । ତେଣୁ ସେ ତରତର ହୋଇ ମାଟି ଖୁମ୍ପିବାକୁ ଲାଗିଲା । କିନ୍ତୁ ତାକୁ ଗୋଟିଏ ହେଲେ ପୋକ ମିଳିଲା ନାହିଁ ।

ଏହି ସମୟରେ ସେ ଗୋଟିଏ ଜାଗାରୁ ମାଟି ଖୁମ୍ପିବାବେଳେ ଗୋଟାଏ ମୁକ୍ତା ପଦାକୁ ବାହାରିପଡ଼ିଲା । ଜିନିଷଟି ଖୁବ୍ ଚକ୍ ଚକ୍ ଦିଶୁଥିଲା । କୁକୁଡ଼ା ଏହାକୁ ଗୋଟାଏ ପ୍ରକାର ଧଳା ପୋକ ମନେକରି ଖାଇବାକୁ ଖୁମ୍ପିଲା; କିନ୍ତୁ ଦୁଇ ତିନି ଥର ଖୁମ୍ପିବା ପରେ ଜାଣିଲା ଯେ ଏହା ପୋକ ନୁହେଁ ଏକପ୍ରକାର ମୂଲ୍ୟବାନ୍ ପଥର ।

ସେ ହତାଶ ହୋଇ ମୁକ୍ତାଟିକୁ ଗୋଡ଼ରେ ଆଡ଼େଇ ଦେଇ କହିଲା, ''ମୋ ଭାଗ୍ୟ ଖରାପ । ଏଇଟା ଗୋଟାଏ ପୋକ

କି ଧାନଟାଏ ହୋଇଥିଲେ ମୋର କିଛି ଉପକାର ହୋଇଥାନ୍ତା । ମୁକ୍ତା ଯେତେ ମୂଲ୍ୟବାନ୍ ହୋଇଥିଲେ ସୁଦ୍ଧା ସେଥିରେ ମୋର



କି ଲାଭ ? କୌଣସି ମଣିଷ ଏହାକୁ ପାଇଥିଲେ ଖୁସି ହୋଇଥାନ୍ତା — କିନ୍ତୁ ଏହା ପାଇ ମୋର ଆନନ୍ଦର କିଛିହେଲେ କାରଣ ନାହିଁ। ମୋ ପକ୍ଷରେ ଏହା ଅଦରକାରୀ ।

"ନିର୍ଗୁଣ ଗୁଣର ଆଦର
ନକରେ, ଏହା ଜାଣ ସାର ।"

## ପବନ ଓ ସୂର୍ଯ୍ୟର କଳି

ଦିନେ ପବନ ଓ ସୂର୍ଯ୍ୟ ଭିତରେ କଳି ହେଲା । ସୂର୍ଯ୍ୟ କହିଲା, "ମୋର ବେଶି ବଳ ।" ପବନ କହିଲା, "ମୋର ବେଶି ବଳ ।"

ପବନ ରାଗିଯାଇ କହିଲା, "ମୋର ବଳ କଥା କାହାକୁ ଅଜଣା ? ଯେତେ ବଡ଼ ଗଛ ହୋଇଥାଉ, ମୁଁ ତାକୁ ଭାଙ୍ଗି ତଳେ ପକାଇଦିଏ। ସମୁଦ୍ର ଉପରେ ମୁଁ ଜୋର୍‌ରେ ଚାଲିଗଲେ ପର୍ବତ ପରି ଲହରୀମାନ ଉଠେ। ମୁଁ ଯେ ତୁମଠାରୁ ଅଧିକ ବଳୁଆ ଏଥିରେ ସନ୍ଦେହ ନାହିଁ।"

ସୂର୍ଯ୍ୟ କହିଲା, "ତୁମେ ବଡ଼ ବଡ଼ ଗଛ ଭାଙ୍ଗି ପକାଅ, ସମୁଦ୍ରରେ ଲହରୀ ଉଠାଅ, ଏ କଥା ସତ। କିନ୍ତୁ ଏଥିରେ ଗର୍ବର କାରଣ ନାହିଁ କିମ୍ବା ତୁମର ବଳ ମୋଠାରୁ ବେଶି ବୋଲି ପ୍ରମାଣିତ ହେଉନାହିଁ। ମୁଁ ମୋର କିରଣଦ୍ୱାରା ଲୋକମାନଙ୍କୁ ଆନନ୍ଦ ଦିଏ; ଗଛର ଫୁଲଫଳମାନଙ୍କୁ ବଢ଼ାଏ।"

ଦୁହିଁଙ୍କ ଭିତରେ ଅନେକ ବେଳଯାଏ ବାଦବିବାଦ ଲାଗିଲା। କେହି ଅନ୍ୟକୁ ବେଶି ବଳବାନ୍ ବୋଲି ମାନିବାକୁ ନାରାଜ। ଏହି ସମୟରେ ଜଣେ ବାଟୋଇ ଯାଉଥିବାର ଦେଖି ପବନ କହିଲା, "ଆମେ ଦୁହେଁଯାକ ଏଇ ବାଟୋଇ ଉପରେ ଆମର ବଳ ପରୀକ୍ଷା କରିବା ଚାଲ। ଯିଏ ତା' ଦେହରୁ କୁରୁତା ବାହର କରିଦେବ, ସେ ବେଶି ବଳୁଆ ବୋଲି ଜଣାଯିବ।" ସୂର୍ଯ୍ୟ ଏ କଥାରେ ରାଜିହୋଇଗଲା।

ପ୍ରଥମେ ପବନ ଚେଷ୍ଟାକଲା ସେ ଲୋକଟିର ଜାମା ଉଡ଼ାଇ ନେବାକୁ। ସେ ଚେଷ୍ଟାକରି ଜୋର୍‌ରେ ବହିଲା। ପବନର ବେଗ ଦେଖି ବାଟୋଇ ତା' ଜାମାର ସବୁ ବୋତାମ ବନ୍ଦକରିଦେଲା। ଏହା ଦେଖି ପବନ ତା'ର ବେଗ ବଢ଼ାଇବାକୁ ଲାଗିଲା। ଏଥିରେ ଲୋକଟିକୁ ଅଧିକ ଥଣ୍ଡା ଲାଗିଲା। ତେଣୁ ସେ ତା' ମୁଣାରୁ ଆଉ ଗୋଟିଏ କୁରୁତା ବାହାରକରି ତା' ଉପରେ ପିନ୍ଧିଲା। ଏହିପରି ଭାବେ ଯେତେ ଚେଷ୍ଟାକଲେ ହେଁ ପବନ ବାଟୋଇର ଦେହରୁ କୁରୁତା ବାହାର କରି ପାରିଲାନାହିଁ।



ଏହା ପରେ ସୂର୍ଯ୍ୟର ପାଳି ପଡ଼ିଲା। ସୂର୍ଯ୍ୟ ପ୍ରଥମେ କଅଁଳିଆ କିରଣ ଦେଲା। ପବନ ତ ବନ୍ଦହୋଇଯାଇଥିଲା, ତେଣୁ ଲୋକଟି ପୁଣି ବାଟ ଚାଲିବାକୁ ଆରମ୍ଭ କଲା। ସୂର୍ଯ୍ୟ ଆସ୍ତେ ଆସ୍ତେ ଅଧିକ କିରଣ ଦେବାରୁ ସେ ପ୍ରଥମେ ଉପର କୁରୁତାଟି କାଢ଼ି ନିଜର ମୁଣାରେ ରଖିଦେଲା। ଖରାର ତେଜ ଆହୁରି ବଢ଼ିବାକୁ ଲାଗିଲା। ବାଟୋଇର ଦେହରୁ ଝାଳ ବୋହିଲା। ଗଛ ଛାଇରେ ଟିକିଏ ବିଶ୍ରାମ ନେବାପାଇଁ ସେ ଚାରିଆଡ଼କୁ ଚାହିଁଲା, କିନ୍ତୁ ସେ କୌଣସିଠାରେ ଗଛ ଦେଖି ପାରିଲା ନାହିଁ। ତହୁଁ ସେ ଦେହରୁ ଜାମାଟି କାଢ଼ିପକାଇ ନିଜ ମୁଣ୍ଡରେ ପକାଇ ଚାଲିବାକୁ ଲାଗିଲା। ଏହା ଦେଖି ପବନ ନିଜର ହାର ମାନିଲା।

"ବଳବାନ୍ ଯହିଁ ହୁଅଇ ବିଫଳ,
କଉଶଳୀ ତହିଁ ଲଭଇ ସୁଫଳ।"

# ଗଧିଆ ଓ କାଣ୍ଡିଆବଗ

ଦିନେ ଗୋଟିଏ ଗଧିଆ ମଲା ବାଛୁରୀଟିଏ ପାଇ ଖାଉଥିଲା। ତାକୁ ବେଶି ଭୋକ ହେଉଥିବାରୁ ସେ ତରତର ହୋଇ ମାଂସ ଗିଳୁଥିଲା। ଏମିତି ଖାଉ ଖାଉ ଖଣ୍ଡିଏ ହାଡ଼ ତା' ତଣ୍ଟିରେ ଲାଗିଗଲା। ଗଧିଆ ଯେତେ ଚେଷ୍ଟା କଲେ ସୁଦ୍ଧା ହାଡ଼ ଖଣ୍ଡିକ ତା' ତଣ୍ଟିରୁ ବାହାରିଲାନାହିଁ। ଯନ୍ତ୍ରଣାରେ ଛଟପଟ ହୋଇ ସେ ଏଣେତେଣେ ଦୌଡ଼ିଲା।

ସେ ବଣର ଯେଉଁ ଜୀବକୁ ଦେଖିଲା ତାକୁ କହିଲା, "ଭାଇ, ମୋ ତଣ୍ଟିରୁ ହାଡ଼ଖଣ୍ଡକ ବାହାରକରିଦିଅ – ମୁଁ ତୁମକୁ ବହୁତ ପୁରସ୍କାର ଦେବି।" ମାତ୍ର ସମସ୍ତେ ଜାଣନ୍ତି ଯେ ଗଧିଆ ଏକ ଦୁଷ୍ଟ ଜୀବ। ତା' ପାଟିରେ ମୁଣ୍ଡ ପୂରାଇଲେ ବିପଦ ଘଟିପାରେ। ତେଣୁ ସେମାନେ କେହି ତାକୁ ସାହାଯ୍ୟ କଲେ ନାହିଁ।

ପୋଖରୀ କୂଳରେ ଗୋଟିଏ କାଣ୍ଡିଆବଗ ବସିଥିଲା। ସେ ଗଧିଆର ବିକଳ ସହିପାରିଲାନାହିଁ। ସେ ଆସି କହିଲା, "ଗଧିଆ ଭାଇ, ଏପରି ଅଥୟ ହୁଅନାହିଁ। ତୁମେ ଧୀରସ୍ଥିର ରହିଲେ ମୁଁ ତୁମ ଗଳାରୁ ହାଡ଼ଟା ବାହାରକରିଦେବି।"

ଗଧିଆ ଖୁସିରେ କହିଲା, "ତମେ ମୋର ଏତକ ଉପକାର କଲେ ମୁଁ ତୁମକୁ ଅନେକ ପୁରସ୍କାର ଦେବି। ତାହାଛଡ଼ା ମୁଁ ଜୀବନ ସାରା ତୁମ ପାଖେ କୃତଜ୍ଞ ରହିବି।"

ଗଧିଆ ଚୁପ୍‌କରି ଆଁ କରି ବସିଲା। କାଣ୍ଡିଆବଗର ତ ବେଶ୍ ଲମ୍ବା ଥଣ୍ଟ। ସେ ଗଧିଆର ପାଟିରେ ତାର ଲମ୍ବ ଥଣ୍ଟଟା ପୂରାଇ ଗଳାରୁ ହାଡ଼ଖଣ୍ଡକ ବାହାର କରି ଆଣିଲା। ହାଡ଼ଖଣ୍ଡକ

ବାହାରି ଯିବାରୁ ଗଧିଆ ଆନନ୍ଦରେ ନାଚିବାକୁ ଲାଗିଲା । ଏହି ସମୟରେ ବଗ କହିଲା, "ଭାଇ, ମୋର ପୁରସ୍କାର ଦିଅ ।"

ଏହା ଶୁଣି ଗଧିଆ ରାଗିଯାଇ କହିଲା, "ତୋଠାରୁ ବଳି ବଡ଼ ଓଲୁ କେହିନାହିଁ । ଯାଆ, ପଳା ।"

ବଗ କହିଲା, "ତୁମେ ପରା ପୁରସ୍କାର ଦେବାକୁ କହିଥିଲ— ଏବେ ଏମିତି କ'ଣ କହୁଚ ?"

ଗଧିଆ କହିଲା, "କହିଥିଲି ସତ ! କିନ୍ତୁ ତୁ ଯେତେବେଳେ ମୋ ପାଟି ଭିତରେ ଥଣ୍ଟ ପୂରାଇ ତୋର ଜୀବନ ଘେନି ଫେରି ଯାଇଚୁ, ସେତିକି କଅଣ ତୋର ପୁରସ୍କାର ହେଲାନାହିଁ ଯେ ଆହୁରି ପୁରସ୍କାର ମାଗୁଚୁ ?"

କାଣ୍ଡିଆବଗ ନିଜର ଭୁଲ ବୁଝିପାରି ଚୁପ୍‌କରି ଚାଲିଗଲା ।

"ଦୁଷ୍ଟର କଲେ ଉପକାର, ନ ମିଳେ କିଛି ପୁରସ୍କାର ।"

## ଦୁଇ ସାଙ୍ଗ ଓ ଭାଲୁ

ଦିନେ ଦୁଇ ସାଙ୍ଗ ଗୋଟିଏ ବଣ ବାଟ ଦେଇ ଯାଉଥିଲେ । ଦୁହିଁଙ୍କ ଭିତରୁ ଦ୍ୱିତୀୟ ଜଣକ କହିଲା, "ମିତ, ଏ ବଣରେ ବାଘ ଭାଲୁ ଅଛନ୍ତି ବୋଲି ଶୁଣିଛି । ଯଦି କୌଣସି ହିଂସ୍ରଜନ୍ତୁ ଆସେ କଅଣ କରିବା ?"

ପ୍ରଥମ ଜଣକ ଉତ୍ତର ଦେଲା, "ଆମେ ଦୁହେଁ ମିଶି ତାକୁ ତଡ଼ିଦେବା ।"

ଠିକ୍ ସେତିକିବେଳେ ଗୋଟିଏ ଭାଲୁ ଦେଖାଗଲା । ଭାଲୁକୁ

ଦେଖି ପ୍ରଥମ ସାଙ୍ଗ ସଙ୍ଗେ ସଙ୍ଗେ ଗୋଟାଏ ଗଛ ଉପରକୁ ଚଢ଼ିଗଲା । ଅନ୍ୟ ଜଣକ ଗଛରେ ଚଢ଼ିପାରିଲା ନାହିଁ । ସେ ତେଣୁ ଏକ ମଲା ମଣିଷ ପରି ତଳେ ଶୋଇପଡ଼ିଲା ଓ ନିଃଶ୍ୱାସ ବନ୍ଦ କରି ରହିଲା । ଭାଲୁ ତା' ପାଖକୁ ଆସି ତାକୁ ଶୁଘିଲା ଓ ଲୋକଟି ମରିଯାଇଛି ବୋଲି ମନେକରି ବଣ ଭିତରକୁ ଚାଲିଗଲା ।



କିଛି ସମୟ ପରେ ପ୍ରଥମ ସାଙ୍ଗ ଗଛରୁ ଓହ୍ଲାଇ ଆସି କହିଲା, ''ଓଃ ! ଆମେ ଆଜି ଏକ ବଡ଼ ବିପଦରୁ ରକ୍ଷାପାଇଗଲେ । ଭାଲୁ ତୁମ କାନ ପାଖରେ କ'ଣ କହୁଥିଲା କି ସାଙ୍ଗ ?''

ଦ୍ୱିତୀୟ ସାଙ୍ଗ ଉତ୍ତର ଦେଲା, ହଁ, ଭାଲୁ ମତେ କହିଲା – ''ଯେଉଁ ଲୋକ ବିପଦବେଳେ ବନ୍ଧୁକୁ ଛାଡ଼ି ପଳାଏ, ତାକୁ କେବେହେଲେ ବିଶ୍ୱାସ କରିବନାହିଁ । ଏଭଳି ଲୋକଙ୍କ ସାଥିରେ ରହିଲେ ବିପଦରେ ପଡ଼ିବାକୁ ହେବ ।''

"ବିପଦେ ଯେହୁ ନୁହେ ସଖା,
ବନ୍ଧୁ ପଣରେ ସେ କି ଲେଖା ?"

## ଗର୍ବର ଫଳ

ଗୋଟିଏ ବେଙ୍ଗୁଲୀ ପୋଖରୀରେ ରହୁଥିଲା । ପୋଖରୀ କୂଳରେ ଗୋଟିଏ ଗାତରେ ତାର ଘର । ବେଳେବେଳେ ସେ ଦୂରକୁ ଚରିବୁଲି ଯାଏ; ସନ୍ଧ୍ୟାବେଳକୁ ନିଜ ଗାତକୁ ଫେରିଆସେ ।

ବେଙ୍ଗୁଲୀ ଡିମ୍ବ ଦେଲା । ଡିମ୍ବରୁ ଗୁଡ଼ିଏ ଛୁଆ ବାହାରିଲେ । କ୍ରମେ ସେମାନେ ବଢ଼ି ପହଁରି ଶିଖିଲେ । ଡେଇଁ ଡେଇଁ ପୋଖରୀ କୂଳରେ ଥିବା ପଡ଼ିଆରେ ଚରିବୁଲିଲେ ।

ଦିନେ ମା ବେଙ୍ଗୁଲୀ ଚରିବାପାଇଁ ଦୂରକୁ ଯାଇଥିଲା । ଛୁଆ ବେଙ୍ଗମାନେ ପଡ଼ିଆରେ ଖେଳିବୁଲି ଚରୁଥିଲେ । ସେହି ପଡ଼ିଆରେ ଗୋଟିଏ ବଳଦ ମଧ୍ୟ ଚରୁଥିଲା । ସେଇ ବଳଦର ଗୋଡ଼ତଳେ ଗୋଟିଏ ବେଙ୍ଗଛୁଆ ଚିପି ହୋଇ ମରିଗଲା । ଏହା ଦେଖି ଅନ୍ୟ ଛୁଆମାନେ ଭୟରେ ପଳାଇଯାଇ ଗାତରେ ଲୁଚିଲେ ।

ସନ୍ଧ୍ୟାବେଳକୁ ବେଙ୍ଗୁଲି ଘରକୁ ଆସିଲା । ମା'କୁ ଦେଖି ଛୁଆ ବେଙ୍ଗମାନେ କହିଲେ, "ମାଆଲୋ ମାଆ, ଆଜି ଆମର ଗୋଟିଏ ଭାଇ ମରିଯାଇଚି । ଗୋଟାଏ ବଡ଼ ଜନ୍ତୁ ତା' ଉପରେ ଗୋଡ଼ ପକାଇ ଦେବାରୁ ଆମ ଭାଇ ମରିଗଲା ।"

ବେଙ୍ଗୁଲୀ ପଚାରିଲା, "ସେ କେଡ଼େ ବଡ଼ ଜୀବ ? କଅଣ ମୋଠାରୁ ବଡ଼ ?"

ଛୁଆମାନେ କହିଲେ, "ହଁ ମା', ତୋ ଠାରୁ ଖୁବ୍ ବଡ଼ ।"

ବେଙ୍ଗୁଲୀ ଗର୍ବରେ ନିଜ ଦେହକୁ ଫୁଲାଇଦେଇ କହିଲା, "କଅଣ ଏଡ଼ିକି ବଡ଼ ?"

ଛୁଆମାନେ କହିଲେ, "ନାଁ, ଏହାଠାରୁ ଆହୁରି କେତେ ବଡ଼ ।"



ବେଙ୍ଗୁଲୀ ଥରକୁ ଥର ନିଜ ଦେହକୁ ଫୁଲାଇ 'କ'ଣ ଏତିକି ବଡ଼ ?' ବୋଲି ପଚାରିଲା ଓ ପ୍ରତିଥର ଛୁଆମାନେ କହିଲେ – ସେ ଜନ୍ତୁଟା ଆହୁରି ବଡ଼ ।

ବେଙ୍ଗୁଲୀ ଶେଷରେ ନିଜ ଦେହକୁ ଏତେ ବେଶି ଫୁଲାଇଦେଲା ଯେ ତା'ର ପେଟ ଫାଟି ପ୍ରାଣ ବାହାରିଗଲା ।

"ଯାହାକୁ ଯେମନ୍ତ କରିଛି ବିହି,
ତହିଁରୁ ଅନ୍ୟଥା କେବେ ନୁହଇ ।
ବେଙ୍ଗୁଲି ପରି ଯେ ଫୁଲାଏ ଦେହ,
ବୃଥା ଗର୍ବ କାହିଁ ରହିଛି କହ ?"

# ଘୋଡ଼ା ଓ ତା'ର ଛାଇ

ଖରାଦିନ। ଜଣେ ବାଟୋଇ ଚାଲିଚାଲି ଥକିପଡ଼ିଲା। ଶେଷକୁ ଆଉ ଚାଲିବାକୁ ତାର ଦେହରେ ବଳ ରହିଲାନାହିଁ। ପାଖରେ ଗୋଟିଏ ଗାଁ ଦେଖି ସେଠାରୁ ସେ ଗୋଟିଏ ଘୋଡ଼ା ଭଡ଼ା ନେଲା। କଥା ହେଲା, ବାଟୋଇ ଆଗ ଗାଆଁ ପର୍ଯ୍ୟନ୍ତ ଘୋଡ଼ାରେ ବସି ଯିବ ଓ ସେଥିପାଇଁ ଭଡ଼ାଦେବ। ଘୋଡ଼ାର ମାଲିକ ସେଠାରୁ ତାର ଘୋଡ଼ା ନେଇ ଫେରିଆସିବ। କଥା ଛିଡ଼ିବା ପରେ ବାଟୋଇ ଘୋଡ଼ାରେ ବସିଗଲା ଓ ଘୋଡ଼ାର ମାଲିକ ଚାଲିଚାଲି ଗଲା।

ବେଳକୁବେଳ ଖରା ବଢ଼ିଲା। ବାଟୋଇ ଏତେ ହାଲିଆ ହୋଇପଡ଼ିଲା ଯେ ଘୋଡ଼ା ଉପରେ ବସି ଯିବାକୁ ମଧ୍ୟ ତାକୁ କଷ୍ଟ ହେଲା। ଏଣେ ଖରାରେ ମୁଣ୍ଡ ପୋଡ଼ିଯାଉଥାଏ, ଦେହ ଝାଳରେ ସରସର ହୋଇଯାଉଥାଏ। ଶେଷରେ ସେ ଘୋଡ଼ାରୁ ଓହ୍ଲାଇପଡ଼ି କିଛି ସମୟ ବିଶ୍ରାମ ନେବାକୁ ଠିକ୍ କଲା।

ଘୋଡ଼ାଟି ଛିଡ଼ାହୋଇ ରହିଲା ଓ ବାଟୋଇ ତାର ଛାଇରେ ବସିଲା। ଘୋଡ଼ାର ମାଲିକ ଦେଖିଲା, ବାଟୋଇ ଘୋଡ଼ାର ଛାଇରେ ନିଶ୍ଚିନ୍ତରେ ବସିଛି ଓ ସେ ଖରାରେ ଛିଡ଼ାହୋଇଛି। ସେ ରାଗିଯାଇ ବାଟୋଇକୁ କହିଲା, "ତୁ ଏଠୁ ଉଠିଯାଆ– ମୁଁ ଛାଇରେ ବସିବି। ମୁଁ ଘୋଡ଼ାପାଇଁ ଭଡ଼ା ନେଇଛି, ତା' ଛାଇପାଇଁ ଭଡ଼ା ନେଇନାହିଁ। ତେଣୁ ତୋର କେବଳ ଘୋଡ଼ା ଉପରେ ଅଧିକାର ଅଛି, ତା' ଛାଇ ଉପରେ ତୋର ଅଧିକାର ନାହିଁ। ମୁଁ ସେ ଛାଇରେ ବସିବି। ତୁ ସେ ଛାଇରୁ ଉଠିଯା।"

ବାଟୋଇ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲା, "ତୁ

ଯେତେ ଭଡ଼ା ମାଗିଲୁ ଦେଲି। ଘୋଡ଼ାରେ ଯେବେ ମୋର ଅଧିକାର ରହିଲା, ତା'ର ଛାଇରେ ମଧ୍ୟ ରହିଲା। ମୁଁ ଏଠାରୁ ଉଠିବି ନାହିଁ।''



ଛାଇ ଉପରେ କାହାର ଅଧିକାର, ଏ ବିଷୟରେ ଦୁହିଁଙ୍କ ଭିତରେ ବହୁତ କଥା କଟାକଟି ହେଲା। ଶେଷରେ ଦୁହେଁଯାକ ରାଗିଯାଇ ମରାମରି ହେବାକୁ ବାହାରିଲେ। ଏହି ସମୟ ଭିତରେ ଘୋଡ଼ାଟା ସେଠାରୁ ପଳାଇଗଲା। ଦୁହେଁ କଳିକଜିଆରେ ମାତିଥିବାରୁ କେହି ଘୋଡ଼ା ଉପରେ ନଜର ରଖିନଥିଲେ।

ବାଟୋଇ ଦେଖିଲା ଯେ ଘୋଡ଼ା ପଳାଇଗଲାଣି। ସେ ଘୋଡ଼ାର ମାଲିକକୁ କହିଲା, ''ଯା, ଏବେ ଘୋଡ଼ାର ଛାଇରେ ବସିବୁ। ଛାୟା ପାଇଁ କଳି କରୁ କରୁ କାୟାକୁ ହରାଇଲୁ।''

ମାଲିକ ବିଚରା ଘୋଡ଼ାକୁ ହରାଇ ମୁଣ୍ଡରେ ହାତଦେଇ ବସିଲା। କହିଲା, "ହାୟ! ମୁଁ କି ମୂର୍ଖ! ସାମାନ୍ୟ ଛାଇ ପାଇଁ କଳି କରିବାକୁ ଯାଇ ମୁଁ ଘୋଡ଼ାଟିକୁ ହରାଇଲି। ଏବେ ଛାୟା ଗଲା, ତା' ସାଥିରେ କାୟା ମଧ ଗଲା। ମୋତେ ଉପଯୁକ୍ତ ଦଣ୍ଡ ମିଳିଛି।"

"ଛାୟାକୁ ଲୋଭ କରେ ଯେହୁ,
କାଳେ ହରାଏ କାୟା ସେହୁ।"

## ବୋକାମିର ପରିଣାମ

ଗୋଟିଏ ଗାଆଁରେ ଜଣେ ଭଲ କାରିଗର ଥିଲା। ସେ ସୁନ୍ଦର ସୁନ୍ଦର ଦେବ ଦେବୀ ମୂର୍ତ୍ତି ତିଆରି କରି ବିକୁଥିଲା। ତେଣୁ ତା'ର ଅନେକ ଗ୍ରାହକ ଥିଲେ।

ଥରେ ସହରର ଜଣେ ଧନୀଲୋକ ତାକୁ ଗୋଟିଏ ଦେବମୂର୍ତ୍ତି ତିଆରି କରିବାକୁ ବରାଦ ଦେଲେ। କାରିଗର ମୂର୍ତ୍ତିଟି ତିଆରି କରି ସହରର ଗ୍ରାହକକୁ ଦେବାପାଇଁ ବାହାରିଲା। ମୂର୍ତ୍ତିଟିକୁ ତା'ର ଗଧ ଉପରେ ରଖି ସେ ନିଜେ ଗଧକୁ ଅଡ଼ାଇ ଅଡ଼ାଇ ଚାଲିଲା।

ବାଟରେ ଗୋଟିଏ ଗାଆଁ ପଡ଼ିଲା। ଗାଆଁର ଲୋକମାନେ ମୂର୍ତ୍ତିଟି ଦେଖିବାପାଇଁ ଗଧ ଚାରିପାଖେ ରୁଣ୍ଡ ହୋଇଗଲେ। ମୂର୍ତ୍ତିଟିର ଖୁବ୍ ପ୍ରଶଂସା କରି ଦେବତାଙ୍କୁ ପ୍ରଣାମ କଲେ। ଏହା ଦେଖି ଗଧ ମନେକଲା ଯେ ଲୋକମାନେ ତାକୁ ସାବାସ୍ କହି ପ୍ରଣାମ କରୁଛନ୍ତି। ସେ ଯେ ଗୋଟିଏ ଗଧ ଓ ବୋଝ ବୋହିବା ତା'ର କାମ ସେକଥା ସେ ଭୁଲିଗଲା।

ଲୋକମାନେ ମୂର୍ତ୍ତି ଦେଖିସାରି ଚାଲିଗଲେ; କିନ୍ତୁ ଗଧ ନିଜ

ପ୍ରଶଂସାରେ ଭୋଳହୋଇ ଆଉ ଚାଲିଲା ନାହିଁ। ସେହିଠାରେ ଛିଡ଼ା ହୋଇ ରହି ରାବିବାକୁ ଆରମ୍ଭ କଲା। କାରିଗର ଗଧର ମନକଥା ଜାଣିପାରି ତାକୁ ପିଟି ପିଟି କହିଲା, "ଆରେ ଓଲୁ, ତୋର ବୁଦ୍ଧି ଏତେ କମ୍ ବୋଲି ଜାଣିନଥିଲି। କିରେ, ଗଧକୁ କିଏ କେବେ ନମସ୍କାର କରିଥିବା ଦେଖିଛୁ? ବୋଝ ବୋହି ତୁ ଚାଲିବା କଥା। ମନେମନେ ନିଜକୁ ବଡ଼ ମନେକରିବାର ଫଳ ଏବେ ପାଇଲୁ— ଏଥର ଚାଲ।"

ଗଧ ପାହାର ଖାଇ ନିଜର ବୋକାମି ବୁଝିପାରି ଧୀରେ ଧୀରେ ଆଗକୁ ଚାଲିଲା।

"ଅଜ୍ଞାନ ଅବିବେକପଣେ,
ନିଜକୁ ବଡ଼ ବୋଲି ମଣେ।"

## ବିପଦରେ ଧୈର୍ଯ୍ୟଧର

ଗୋଟିଏ କୋକିଶିଆଳି ବଡ଼ ଦୁଃଖରେ ଥିଲା। ତାକୁ ଖାଇବାକୁ ମିଳୁନଥିଲା। ତେଣୁ ତା'ର ଦେହ ଶୁଖିଯାଇଥିଲା; ଦେହର ହାଡ଼ ଗଣିହେଉଥିଲା। ସେ ଏଣେତେଣେ ଯେତେ ବୁଲିଲେ ସୁଦ୍ଧା କିଛି ଆହାର ପାଇଲା ନାହିଁ।

କିଛି ପୋକଜୋକ ପାଇବା ଆଶାରେ ସେ ଗୋଟିଏ ବରଗଛର ମୂଳ ତାଡୁଥିଲା। ଏହି ସମୟରେ ଗଛର ଗୋଟିଏ କୋରଡ଼ରେ କିଛି ଜିନିଷ ଥୁଆହୋଇଥିବା ସେ ଦେଖିଲା। ତାହା ଦେଖି ସେ କୋରଡ଼ ଭିତରେ ପଶିଗଲା। ଦେଖିଲା, ଗୋଟିଏ ପୁଡ଼ିଆରେ କିଛି ରୁଟି ଓ ତରକାରି ରହିଛି। ଏହା ଦେଖି ସେ ଆନନ୍ଦରେ ଭୋଳ ହୋଇଗଲା। ସେ ଆଗପଛ ନ ବିଚାରି ସେଇ କୋରଡ଼

ଭିତରେ ରହି ସବୁତକ ଜିନିଷ ଚାଟି ଖାଇଦେଲା ।

କୋରଡ଼ର ମୁହଁଟି ସାନ ଥିଲା । ତା' ଭିତରେ ପଶିଲାବେଳେ କୋକିଶିଆଳିର ପେଟରେ କିଛି ନ ଥିଲା । ଦେହଟି ଅତି ସରୁ ହୋଇଥିବାରୁ ସେ ସହଜରେ କୋରଡ଼ ଭିତରେ ପଶିଯାଇଥିଲା;



କିନ୍ତୁ ପେଟଭରି ଖାଇସାରିବା ପରେ ତା'ର ପେଟଟି ଫୁଲିଯାଇଥିଲା । ତେଣୁ ସେ କୋରଡ଼ର ମୁହଁବାଟେ ଆଉ ବାହାରି ପାରିଲା ନାହିଁ । ତା'ର ମୁହଁ ଓ ଛାତି କୋରଡ଼ରୁ ବାହାରି ଆସିଲା, ହେଲେ ପେଟଟି ଲାଖି ରହିଲା । ସେ ବାହାରି ଆସିବାକୁ ଯେତିକି ଛାଟିପିଟି ହେଲା ପେଟଟି ସେତିକି ଟାଣ ହୋଇ ଲାଖିରହିଲା ଓ ତାକୁ ବେଶି ବେଶି କଷ୍ଟ ହେଲା ।

ସେ ବିକଳ ହୋଇ ରାବିଲା । ତା'ର ପାଟି ଶୁଣି ପାଖରେ ଥିବା ଆଉ ଗୋଟିଏ କୋକିଶିଆଳି ସେଠାକୁ ଆସିଲା । ସବୁ

ଘଟଣା ଜାଣିବା ପରେ ସେ କହିଲା, ‘‘ନିଜର ବୋକାମିରୁ ତୁ ଏଭଳି କଷ୍ଟ ପାଉଛୁ। ଯାହାହେଉ ରାବିଲେ ଲାଭ ନାହିଁ, ବରଂ ବିପଦ ଅଛି। ତୋର ରାବ ଶୁଣିଲେ ଲୋକମାନେ ଆସି ତୋତେ ପିଟି ମାରିପକାଇବେ। ଯିଏ ଖାଇବାକୁ ଏଠି ରୁଟି ରଖିଥିଲା, ସେ ଆସିବା ଆଗରୁ ତୁ ପଳାଇ ପାରିଲେ ରକ୍ଷା। ତୁ ଏବେ ଚୁପ୍ କରି ସେହିପରି ରହିଥା। ତୁ ଯାହା ଖାଇଛୁ କେତେ ଘଣ୍ଟା ପରେ ତାହା ହଜମ ହୋଇଯିବ। ତା’ପରେ ପେଟ ସରୁ ହୋଇଯିବ। ସେତେବେଳେ ବାହାରିବାକୁ କଷ୍ଟ ହେବନାହିଁ। ସେ ଯାଏଁ ଅପେକ୍ଷା କରିବା ଛଡ଼ା ତୋର ଅନ୍ୟ ଉପାୟ ନାହିଁ।’’

‘ବିପଦେ ଧଇର୍ଯ୍ୟ ଧାରଣ, ଅଟଇ ଜ୍ଞାନୀର ଲକ୍ଷଣ।’

## ଅତି ଲୋଭର ଫଳ

ଜଣେ ବୁଢ଼ୀର ଗୋଟିଏ ମାଈ କୁକୁଡ଼ା ଥିଲା। ବୁଢ଼ୀ ତାକୁ ପ୍ରତିଦିନ ଧାନ ଓ ଗହମ ଖାଇବାକୁ ଦେଉଥିଲା। କୁକୁଡ଼ା ସେହିପରି ପ୍ରତିଦିନ ରାତିରେ ଗୋଟିଏ ଲେଖାଏଁ ଅଣ୍ଡା ଦିଏ। ବୁଢ଼ୀ ସେଇଟି ଭାଜି ଖାଏ।

ଏହିପରି କିଛି ଦିନ ଗଲା। ଦିନେ ବୁଢ଼ୀ ବିଚାରିଲା, ‘‘ମୁଁ ଏହାକୁ ଯେତିକି ଖାଇବାକୁ ଦେଉଛି, ତା’ର ଦୁଇଗୁଣ ଦେବି। ତାହାହେଲେ ସେ ଗୋଟିଏ ଡିମ୍ବ ନ ଦେଇ ଥରକେ ଦୁଇଟି ଡିମ୍ବ ଦେବ। ମୁଁ ଆଗପରି ଗୋଟିଏ ଖାଇବି, ଆରଟି ନେଇ ବଜାରରେ ବିକିବି।’’

ସେ ସେହିପରି କଲା। ବେଶି ଖାଇବାରୁ କୁକୁଡ଼ାଟି ମୋଟା

ହୋଇଗଲା। ବୁଢ଼ୀ ଚାହିଁଥାଏ, କେଉଁ ଦିନ ସେ ଦୁଇଟା ଅଣ୍ଡା ଦେବ। କିନ୍ତୁ ସେ ଏଣିକି ପ୍ରତିଦିନ ଗୋଟିଏ ଲେଖାଏଁ ଅଣ୍ଡା ନ ଦେଇ ଦୁଇ ତିନିଦିନ ଛଡ଼ାରେ ଗୋଟିଏ ଗୋଟିଏ ଅଣ୍ଡା ଦେଲା। ମାସେ ଦୁଇମାସ ପରେ ଆଉ ଆଦୌ ଅଣ୍ଡା ଦେଲାନାହିଁ। ବେଶି ଲୋଭ କରି ସେ ଯେଉଁ ଗୋଟିଏ ଅଣ୍ଡା ପାଉଥିଲା, ତାହା ସୁଦ୍ଧା ହରାଇଲା।

'ଯେ ଜନ ହୁଏ ଲୋଭବଶ, ମୂଳଟି ହରାଏ ଅବଶ୍ୟ।'

## ବୁଦ୍ଧିର ବଳ

ଗୋଟିଏ ଗଧ ବଣପାଖ ପଡ଼ିଆରେ ଘାସ ଚରୁଥିଲା। କଅଁଳ ଦୂବଘାସ ଖାଇବାରେ ସେ ଏପରି ମନଦେଇଥିଲା ଯେ ଅନ୍ୟ କେଉଁ ଆଡ଼କୁ ତା'ର ନଜର ନଥିଲା। ହଠାତ୍ ସେ ମୁଣ୍ଡ ଟେକିଲାବେଳେକୁ ଦେଖିଲା ଯେ ଗୋଟାଏ ବାଘ ତାକୁ ଧରିବାକୁ ଆସୁଚି। ବାଘଟା ତା'ର ଏତେ ପାଖକୁ ଆସିଯାଇଥିଲା ଯେ ଦୌଡ଼ିପଳାଇଲେ ମଧ ତା'ର ରକ୍ଷା ନଥିଲା। ସେ ଭାବିଲା, ଦୌଡ଼ି ପଳାଇଲେ ବାଘ ଦୁଇ ଖେପାରେ ଆସି ତାକୁ ମାଡ଼ି ବସିବ। ଛିଡ଼ାହୋଇ ରହିଲେ ମଧ ମାରି ଖାଇବ। ତେଣୁ ଜୀବନର ଆଉ ଆଶା ନାହିଁ। ତଥାପି ଚେଷ୍ଟା କରି ଦେଖେଁ। ଦେହବଳରେ ତ ବାଘକୁ ପାରିବି ନାହିଁ– ବୁଦ୍ଧିବଳରେ ଯଦି କିଛି ହୁଏ।

ଏହିପରି ଭାବି ସେ ଛୋଟେଇ ଛୋଟେଇ ଧୀରେ ଧୀରେ ଚାଲିବାକୁ ଲାଗିଲା। ବାଘ ଗଧ ପାଖକୁ ଲାଗି ଆସି ପଚାରିଲା, ''କିରେ, ତୁ ଏପରି ଛୋଟେଇ ଛୋଟେଇ ଚାଲୁଛୁ କାହିଁକି ?''

ଗଧ କହିଲା, ''ହଜୁର, କଅଣ କହିବି– କାଲି ଦଉଡୁଥିବା

ବେଳେ ଗୋଟାଏ ବଡ଼ ବାଉଁଶକଣ୍ଟା ମୋ ପଛ ଗୋଡ଼ରେ ଗଳିଗଲା। ଯେତେ ଉପାୟ କଲି ସେଇଟା ବାହାରିଲା ନାହିଁ। ଗୋଡ଼ ପାଚି ଦରଜ ହୋଇଯିବାରୁ ଏପରି ଛୋଟେଇ ଛୋଟେଇ ଚାଲୁଛି। ତୁମେ ବୋଧହୁଏ ଆହାର ଖୋଜି ଆସିଥିଲ ?''

ବାଘ କହିଲା, ''ହଁ, ମୁଁ ତୋତେ ଖାଇବି ବୋଲି ବିଚାରିଛି।''



ଗଧ କହିଲା, ''ମୋତେ ଖାଇବ ତ ମୋର ମନାନାହିଁ। ଗଧ ତ ବାଘର ଆହାର ! ତେବେ ମୁଁ ଆଗରୁ ସାବଧାନ କରିଦେଉଛି; ମୋ ଗୋଡ଼ରୁ ସେ କଣ୍ଟାଟା ବାହାର ନ କରି ମୋତେ ଖାଇବାରେ ତୁମର ବିପଦ ଅଛି। ମୋ ଗୋଡ଼ର କଣ୍ଟାଟା ତୁମ ତଣ୍ଟିରେ ଲାଗିଲେ ତୁମର ପ୍ରାଣ ଯାଇପାରେ। ତେଣୁ ମୁଁ କହୁଚି– ଆଗେ ମୋ ପଛ ଗୋଡ଼ରୁ କଣ୍ଟାଟା କାଢ଼ିଦିଅ– ତା'ପରେ ମୋତେ ଖାଅ।''

ବାଘ ଗଧ କଥାକୁ ସତ ମନେକରି ତା'ର ପଛ ଗୋଡ଼ ପାଖରେ ବସିଗଲା ଓ ଗଧର ଗୋଡ଼କୁ ଟେକି କଣ୍ଟା ଖୋଜିବାକୁ

ଲାଗିଲା। ଏହି ସମୟରେ ଗଧ ସେହି ଗୋଡ଼ରେ ବାଘର ମୁହଁକୁ ଏକ ଶକ୍ତ ଲାତ ମାରି ଦୌଡ଼ିବାକୁ ଲାଗିଲା। ସେହି ଲାତରେ ବାଘର ମୁହଁ ବଙ୍କାହୋଇଗଲା, ପାଟିରୁ ଚାରିଟା ଦାନ୍ତ ଭାଙ୍ଗିଯାଇ ରକ୍ତ ବୋହିଲା। ତା'ର ମୁଣ୍ଡ ଭ୍ରମିଗଲା। ବାଘ ନିଜର ବୋକାମି ବୁଝିପାରି ଲାଜରେ ଚୁପ୍‌ରହି ଭାବିଲା– "ମୁଁ ଗଧକୁ ନଖାଇ ତା' ପାଖେ ଡାକ୍ତରୀ କରିବାକୁ ଗଲି କାହିଁକି? ଛାର ଗଧଟାଏ ମୋତେ ବୁଦ୍ଧିରେ ବଳିଗଲା... ଏ କଥା କହିବି କାହାକୁ?"

ବାଘ ଲାଜରେ ମୁହଁ ପୋତି ତା'ର ଗୁହାକୁ ପଳାଇଗଲା।

"ଦେହର ବଳ ବୃଥା ହେଲେ,
ସିଦ୍ଧି ମିଳଇ ବୁଦ୍ଧିବଳେ।

## ବିପଦ କୁଆଡୁ ଆସିବ ଜଣାନାହିଁ

ଗୋଟିଏ ହରିଣର ବାଁଆଖିଟି ଫୁଟିଯାଇଥିଲା। ତେଣୁ କାଳେ ଶିକାରୀ ତା'ର ବାଁ ପାଖରୁ ଶର ମାରିବ ବୋଲି ସବୁବେଳେ ତା'ର ଭୟଥିଲା। ସେ ବଣରେ ନ ରହି ସମୁଦ୍ରକୂଳକୁ ଚାଲିଗଲା। ସେ ଭାବିଲା, ସମୁଦ୍ରଆଡୁ କେହି ଶର ମାରିବା ଭୟ ନାହିଁ। ତେଣୁ କଣା ଆଖିଟିକୁ ସମୁଦ୍ର ପଟକୁ ରଖି ସେ ଘାସ ଚରୁଥିଲା। ଡାହାଣ ପାଖରୁ କେହି ଶିକାରୀ ଆସିଲେ ତାକୁ ଦେଖି ପଳାଇଯିବ ବୋଲି ତା'ର ବିଚାର ଥିଲା।

ଏହିପରି ଅନେକ ଦିନ ବିତିଗଲା। ତା' ଭାଗ୍ୟକୁ ସେ କୌଣସି ଶିକାରୀ ହାବୁଡ଼େ ପଡ଼ିନଥିଲା। ଦିନେ ଦଳେ ଲୋକ ନୌକାରେ ବସି କୂଳ ପାଖେ ପାଖେ ସମୁଦ୍ରରେ ଯାଇଥିଲେ। ସେମାନେ ଦେଖିଲେ ଗୋଟିଏ ହରିଣ ସମୁଦ୍ରକୂଳରେ ଘାସ ଚରୁଛି।

ଏଣେ ହରିଣ ନିଶ୍ଚିନ୍ତ ଯେ ବଣ ପଟରେ କୌଣସି ଶତ୍ରୁ ନାହିଁ। ସମୁଦ୍ର ପଟୁ ତ ସହଜେ ବିପଦ ନାହିଁ।

ସମୁଦ୍ରରେ ଶତ୍ରୁ ଅତି ନିକଟରେ ଥିଲେ ସୁଦ୍ଧା ସେପାଖକୁ ତା'ର କଣା ଆଖିଟା ଥିବାରୁ ସେ ସେମାନଙ୍କୁ ଦେଖିପାରିନଥିଲା। ନୌକାରେ ଥିବା ଲୋକମାନଙ୍କ ମଧ୍ୟରୁ ଜଣେ ଶିକାରୀ ଗୋଟିଏ ଶର ମାରିଲା। ତାହା ହରିଣ ଦେହରେ ବାଜିବାରୁ ସେ ତଳେ ପଡ଼ି ଛଟପଟ ହେଲା। ମରଣ କାଳରେ ସେ ଭାବିଲା, "ମୋର ଦୃଢ଼ ବିଶ୍ୱାସ ଥିଲା ଯେ ସମୁଦ୍ରଆଡୁ ମୋର ବିପଦ ନାହିଁ; ଯଦି କେବେ କେହି ମୋତେ ଶର ମାରିବାକୁ ଆସିବ ସେ କେବଳ ମୋର ଡାହାଣ ପାଖରୁ ଆସିବ। ସେଇଥିପାଇଁ ମୁଁ ଭଲ ଆଖିଟି ସବୁବେଳେ ସ୍ଥଳଭାଗ ଆଡ଼କୁ ରଖି ସାବଧାନ ରହିଥିଲି। କିନ୍ତୁ ଦୈବର ବିଚାର ଏପରି ଯେ, ଯେଉଁ ପାଖଟିକୁ ମୁଁ ନିରାପଦ ମନେକରିଥିଲି, ସେହିଠାରୁ ହିଁ ମୋ ଉପରକୁ ବିପଦ ଆସିଲା।"

"ଚିନ୍ତଇ ଏକ ମନେ ଜନ, ଦଇବ ଚିନ୍ତା କରେ ଆନ।"

## ଭାବିଚିନ୍ତି କାମ କର

ଥରେ ଗୋଟିଏ ବିଲୁଆ ବଣ ଭିତରେ ବୁଲୁ ବୁଲୁ ଗୋଟିଏ କୂଅ ଭିତରେ ଗଳିପଡ଼ିଲା। ସେ କୂଅରୁ ବାହାରିବା ପାଇଁ ବହୁତ ଚେଷ୍ଟାକଲା, କିନ୍ତୁ ଉଠିପାରିଲା ନାହିଁ। ବହୁତ ବେଳଯାଏଁ ସେ କୂଅର ପାଣିରେ ପହଁରିଲା, କିନ୍ତୁ ସେ ଭିତରୁ ବାହାରିବାର କିଛି ଉପାୟ ଦେଖିପାରିଲା ନାହିଁ।

କିଛି ସମୟ ପରେ ଗୋଟିଏ ଛେଳି ଆସି ସେଠାରେ ପହଞ୍ଚିଲା । ସେତେବେଳକୁ ତାକୁ ଭାରି ଶୋଷ ହେଉଥିଲା । ସେ କୂଅର ଫନ୍ଦ ପାଖକୁ ଆସି ଭିତରେ ଚବ ଚବ ଶବ୍ଦ ହେବା ଶୁଣିଲା । ତହୁଁ ଛେଳି କୂଅ ଭିତରକୁ ଚାହିଁ ବିଲୁଆକୁ ଦେଖି କହିଲା, ''ହେ ବିଲୁଆ ଭାଇ, କୂଅ ଭିତରେ କ'ଣ କରୁଚ ?''

ବିଲୁଆ ଦେଖିଲା ବେଶ୍ ଏକ ସୁଯୋଗ ଆସିଚି । ଛେଳିଟା କୂଅ ଭିତରକୁ ଆସିଲେ ସେ ତା' ପିଠିରେ ଛିଡ଼ାହୋଇ ଉପରକୁ କୁଦାମାରି କୂଅ ବାହାରକୁ ଚାଲିଯିବ । ମନକଥା ମନରେ ରଖି ବିଲୁଆ କହିଲା, ''ଛେଳିଭାଇ, ତୁମେ କୁଆଡ଼େ ଆସିଲ ? ମତେ ଶୋଷ ହେଉଥିଲା । ମୁଁ ପାଣି ପିଇବାକୁ ଆସିଥିଲି । ଓଃ, କି ବଢ଼ିଆ ଥଣ୍ଡା ପାଣି ! ଯେତେ ପିଇଲେ ବି ଛାଡ଼ି ଯିବାକୁ ମନହେଉନାହିଁ । ମୁଁ କେତେ ନଈ ପୋଖରୀ କୂଅରୁ ପାଣି ପିଇଛି, ହେଲେ ଏଭଳି ମିଠା ପାଣି କେଉଁଠି ପାଇନଥିଲି ।''

ଛେଳି କହିଲା, ''ମତେ ବଡ଼ ଶୋଷ ହେଉଛି— ମତେ ପିଇବାକୁ ଦେବ ?''

ବିଲୁଆ ହସି ହସି କହିଲା, ''ଭାଇ, ତୁମେ ଏ କଅଣ କହୁଛ ? ଏଠି କଅଣ ପାଣିର ଅଭାବ ଅଛି ଯେ ମୁଁ ମନାକରିବି ? ତୁମଭଳି ହଜାରେଟା ଜୀବ ପିଇଲେ ବି ପାଣି ସରିବ ନାହିଁ । ଚଞ୍ଚଳ ଆସ, ମନ ଭରି ପିଅ, ଦେହ ଥଣ୍ଡା ହୋଇଯିବ । ଠିଆ ରହି ଭାବୁଛ ଆଉ କଅଣ ? ଶୀଘ୍ର ଆସି ପିଅ । ପାଣି ଏତେ ବଢ଼ିଆ ଯେ ଏତେ ପିଇଲା ପରେ ବି ବାହାରିଯିବାକୁ ମୋର ମନ ହେଉନାହିଁ ।''

ଛେଳି ବିଲୁଆ କଥାରେ ଭୁଲିଯାଇ ମିଠା ପାଣି ପିଇବା ଲୋଭରେ କୂଅ ଭିତରକୁ ଡେଇଁପଡ଼ିଲା । ବିଲୁଆ ସାଙ୍ଗେ ସାଙ୍ଗେ

ଛେଳିର ପିଠି ଉପରେ ଚଢ଼ିଯାଇ ଏକ କୁଦାମାରି ବାହାରକୁ ଚାଲିଆସିଲା ।

ଛେଳି ଏହା ଦେଖି ଡାକପକାଇଲା, "ବିଲୁଆ ଭାଇ, ତୁମେ ବାହାରକୁ ଚାଲିଗଲ । ମୁଁ କଅଣ ଏକୁଟିଆ ଏ କୂଅ ଭିତରେ ରହିଥିବି ?"



ବିଲୁଆ ହସି ହସି କହିଲା, "ଛେଳି ଭାଇ, ମୁଁ ମୋର ଘରକୁ ଚାଲିଲି । ତୁମେ କୂଅ ଭିତରେ ରହି ପେଟଭରି ପାଣି ପିଉଥାଅ । ମୋ କଥାରେ ଭୁଲିଯାଇ କୂଅକୁ ଡେଇଁ ପଡ଼ିଲ – କିପରି ବାହାରିବ ସେ କଥା ସେତେବେଳେ ବିଚାର କଲ ନାହିଁ । ଏବେ ନିଜ ବୋକାମିର ଫଳ ଭୋଗକରୁଥାଅ ।"

"ବୁଝିବିଚାରି କାମ କଲେ, ପ୍ରମାଦ ନ ପଡ଼ଇ ଭଲେ ।"

# ମୂଷା ସିଂହକୁ ରକ୍ଷାକଲା

ଏକ ବଣରେ ସିଂହଟିଏ ଥିଲା । ରାତିଯାକ ଶିକାର କରି କରି ସେ ହାଲିଆ ହୋଇ ଗୋଟିଏ ଗଛମୂଳେ ଶୋଇ ପଡ଼ିଲା । ସେଇ ଗଛମୂଳର ଗାତ ଭିତରେ ଗୋଟିଏ ମୂଷା ରହୁଥିଲା । ସିଂହର ଘୁଙ୍ଗୁଡ଼ି ଶୁଣି ସେ ବାହାରିଆସିଲା । ଦେଖିଲା, ଗୋଟାଏ ପ୍ରକାଣ୍ଡ ଜନ୍ତୁ ଶୋଇଚି । ସେ ଆନନ୍ଦରେ ତା' ଉପରେ ଦଉଡ଼ାଦଉଡ଼ି କଲା । ଏହା ଫଳରେ ସିଂହର ନିଦ୍ ଭାଙ୍ଗିଗଲା । ସିଂହ ମୂଷାଟିକୁ ଧରିପକାଇ କହିଲା, "କିରେ ମୂଷା, ତୁ ଏଡ଼େ ଟିକିଏ ଜୀବ— ତୋର ପୁଣି ଏତେ ସାହସ ଯେ ମୋ ଦେହ ଉପରେ ଦଉଡୁଛୁ ? ଏହିକ୍ଷଣି ତୋର ଜୀବନ ନେବି ।"

ମୂଷା ଭୟରେ ଚିଁ-ଚିଁ ଶବ୍ଦ କରି କହିଲା, "ହେ ପଶୁରାଜ, ତୁମେ ହେଉଚ ବଣର ରାଜା । ମୁଁ ନଜାଣି ଦୋଷ କରିଛି— ସେଥିପାଇଁ ମୋତେ କ୍ଷମା ଦିଅ । ମୋ ଭଳି ଛୋଟ ଜୀବକୁ ମାରିଲେ ତୁମର ବଡ଼ପଣ ବଢ଼ିବ ନାହିଁ; ବରଂ ମୋତେ ଛାଡ଼ିଦେଲେ ତୁମର ବଡ଼ପଣ ଜଣାଯିବ । ମୁଁ ଚିରକାଳ ପାଇଁ ତୁମ ପାଖେ ଋଣୀ ରହିବି ।"

ସିଂହ ଭାବିଲା, "ସତ କଥା, ମୁଁ ସିନା ହାତୀପରି ବଡ଼ ଜୀବ ମାରିଲେ ପ୍ରଶଂସା ପାଇବି— ମୂଷାଟାଏ ମାରିଛି ବୋଲି କହିବା ମୋ ପକ୍ଷରେ ଅପମାନ ଛଡ଼ା ଆଉ କିଛି ନୁହେଁ ।" ଏହା ଭାବି ସେ ମୂଷାଟିକୁ ଛାଡ଼ିଦେଲା । ମୂଷା ପଳାଇଯାଇ ଗାତରେ ପଶିଗଲା ।

ଦିନେ ଜଣେ ଶିକାରୀ ସେହି ଗଛ ପାଖରେ ଫାଶ ବସାଇଥିଲା । ସିଂହକୁ ସେ କଥା ଜଣାନଥିଲା । ସେ ସେଥିରେ ପଡ଼ିଗଲା । ଫାଶ ଛିଣ୍ଡାଇବା ପାଇଁ ସିଂହ ଛାଟିପିଟି ହୋଇ ଗର୍ଜନ କଲା; ମାତ୍ର ଫାଶର ଦଉଡ଼ି ଟାଣ ଥିବାରୁ ଛିଣ୍ଡିଲା ନାହିଁ।

ସିଂହର ଗର୍ଜନ ଶୁଣି ମୂଷା ଗାତରୁ ବାହାରିଆସି କହିଲା, "ପଶୁରାଜ ! ଭୟ କରନାହିଁ। ତୁମେ ଚୁପ୍‌କରି ରହ। ମୁଁ ଦାନ୍ତରେ ଦଉଡ଼ି କାଟିଦେଲେ ତୁମେ ଫାଶରୁ ମୁକୁଳି ଯିବ। ତୁମେ ଦିନେ



ଦୟାକରି ମୋତେ ନମାରି ମୋ ଜୀବନ ରଖିଥିଲ। ମୁଁ ତୁମପାଇଁ ଏ ସାମାନ୍ୟ ଉପକାର କରିବି ନାହିଁ ?"

ସିଂହ ଚୁପ୍ ହୋଇ ପଡ଼ିରହିଲା। ମୂଷା ଫାଶର ଗଣ୍ଠିଗୁଡ଼ିକ କାଟିବାରେ ଲାଗିଲା। ଫାଶ ଛିଡ଼ିଯିବାରୁ ସିଂହ ମୁକୁଳିଗଲା। ମୂଷା

କହିଲା, "ଜୀବ ଯେତେ ଛୋଟ ହେଲେ ସୁଦ୍ଧା ତାହାଠାରୁ କିଛି ଉପକାର ମିଳିପାରେ। ସେଦିନ ତୁମେ ମୋତେ ମାରି ଦେଇଥିଲେ ଆଜି ତୁମର ଅବସ୍ଥା କଅଣ ହୋଇଥା'ନ୍ତା ? ମୋତେ ନମାରି ତୁମେ ଖୁବ୍ ଭଲ କରିଛ।"

ସିଂହ କହିଲା, "ସେଥିରେ କିଛି ସନ୍ଦେହ ନାହିଁ। ଏଣିକି ମୁଁ କାହାକୁ ସାନ ବୋଲି ହେୟ ମଣିବି ନାହିଁ।"

"କାହାକୁ ନ ମଣିବ ସାନ,
ନ ନେବ କାହାରି ଜୀବନ।"

## ମିଛ କହିବାର ପରିଣାମ

ଗୋଟିଏ ପିଲା ପ୍ରତିଦିନ ମେଣ୍ଢାପଲ ନେଇ ବଣରେ ଚରାଉଥିଲା। ପିଲାଟି ସକାଳୁ କିଛି ଖାଇଦେଇ ମେଣ୍ଢାମାନଙ୍କୁ ନେଇ ବଣରେ ଚରିବାକୁ ଛାଡ଼ିଦିଏ। ନିଜେ ଗଛମୂଳେ ବସି ଖେଳେ। କେବେକେବେ ଗଛ ଉପରେ ଚଢ଼ି ଡାଳମାଙ୍କୁଡ଼ି ଖେଳେ। ବେଳ ବୁଡ଼ି ଆସିଲେ ମେଣ୍ଢାମାନଙ୍କୁ ଏକାଠି କରି ଘରକୁ ନେଇଆସେ। ବଣ ଭିତରେ ଥିବାଯାଏ ତାକୁ ବଡ଼ ଖରାପ ଲାଗେ। ସାଙ୍ଗସାଥୀ କେହି ନାହିଁ– ଏକୁଟିଆ କେତେ ଖେଳିବ ?

ଦିନେ ବଣରେ ଥିଲାବେଳେ ତା' ମନକୁ ଗୋଟିଏ ଉପାୟ ଆସିଲା। ସେ ଭାବିଲା– ମୁଁ ଯେବେ 'ହେଟାବାଘ ମେଣ୍ଢା ନେଇଯାଉଛି' ବୋଲି ଡାକପକାଏ, ତେବେ ଆଖପାଖର ଲୋକେ ମୋ ଡାକ ଶୁଣି ଦଉଡ଼ି ଆସିବେ। ବେଶ୍ ଗୋଟେ ମଜା ହେବ।

ଏହିପରି ବିଚାରକରି ସେ ଡାକ ପକାଇଲା, "ହେଟାବାଘ ମେଣ୍ଢାପଲରେ ପଶି ମେଣ୍ଢା ନେଇଯାଉଚି। କିଏ କେଉଁଠି ଅଛ

ଦଉଡ଼ିଆସ ।''

କିଛି ଦୂରରେ କେତେଜଣ ଲୋକ କାମକରୁଥିଲେ । ସେମାନେ ପିଲାର ଡାକ ଶୁଣି ଠେଙ୍ଗାବାଡ଼ି ଧରି ତା' ପାଖକୁ ଦୌଡ଼ିଆସିଲେ । ଲୋକମାନଙ୍କୁ ଦେଖି ପିଲାଟା ଠୋ-ଠୋ ହସି କହିଲା, ''ହେଟାବାଘ ନାହିଁମ – ମଜା ଦେଖିବାପାଇଁ ମୁଁ ଏମିତି ଡାକୁଥିଲି ।'' ଲୋକମାନେ କାମ ବନ୍ଦକରି ଆସିଥିଲେ । ପିଲାର କଥା ଶୁଣି ତା' ଉପରେ ବିରକ୍ତ ହୋଇ ପୁଣି ନିଜ ନିଜ କାମକୁ ଫେରିଗଲେ ।



କିଛି ଦିନ ପରେ ଦିନେ ସତକୁସତ ଗୋଟାଏ ହେଟାବାଘ ଆସି ମେଣ୍ଢାପଲରେ ପଶିଲା । ବାଘକୁ ଦେଖି ମେଣ୍ଢାମାନେ ଏଣେତେଣେ ଦୌଡ଼ିଲେ । ହେଟାବାଘ ସେମାନଙ୍କୁ ଗୋଟି ଗୋଟି କରି ମାରିବାକୁ ଲାଗିଲା । ଏହା ଦେଖି ପିଲାଟି ଛାନିଆ ହୋଇ

ଡାକପକାଇଲା, "ହେଟାବାଘ ମେଣ୍ଢାପଲରେ ପଶି ମେଣ୍ଢା ମାରିପକାଉଛି। କିଏ ଅଛ, ଦୌଡ଼ିଆସ।" ଲୋକମାନେ ତା'ର ଡାକ ଶୁଣିଲେ। କିନ୍ତୁ ସେ ଆଗଭଳି ମଜା ଦେଖିବା ପାଇଁ ଡାକୁଥିବ ଭାବି କେହି ତାକୁ ସାହାଯ୍ୟ କରିବାକୁ ଆସିଲେ ନାହିଁ। ହେଟାବାଘ କେତେଟା ମେଣ୍ଢା ମାରି, ଗୋଟାଏ ଦୁଇଟା ଖାଇ ବଣକୁ ଚାଲିଗଲା।

"ଯେହୁ କହଇ ମିଥ୍ୟାଭାଷ,
ହରାଏ ସଭିଙ୍କ ବିଶ୍ୱାସ।
କହିଲେ ସେହୁ ସତ୍ୟକଥା,
ମଣନ୍ତି ଲୋକେ ତାହା ମିଥ୍ୟା।"

□ □ □